# ମନମରାଳ ଝୁରେ

ରଚୟିତା :

ଶ୍ରୀ ଲୋକନାଥ ମିଶ୍ର (ଭରଦ୍ୱାଜ)
ଓଡ଼ଗାଁ, ନୟାଗଡ଼

ସଂକଳନର ନାମ :

**ମନମରାଳ ଝୁରେ**

ରଚୟିତା :

**ଶ୍ରୀ ଲୋକନାଥ ମିଶ୍ର (ଭରଦ୍ୱାଜ)**

ବାସସ୍ଥାନ :

ଓଡ଼ଗାଁ, ନୟାଗଡ଼

ଜନ୍ମସ୍ଥାନ :

କୋରପିଠା, ନୟାଗଡ଼

ରଚନାକାଳ—୧୯୯୪ ମସିହା

ପ୍ରଥମ ସଂସ୍କରଣ :

ତା ୧୫ । ୨ । ୧୯୯୫, ମାଘ ପୂର୍ଣ୍ଣିମା

ପ୍ରଚ୍ଛଦ ଶିଳ୍ପୀ :

ଶ୍ରୀ ଉମାଶଙ୍କର ଦାସ,
ଓଡ଼ଗାଁ, ପୁରୀ

ମୁଦ୍ରଣ :

**ଗୀତାଞ୍ଜଳି ପ୍ରେସ୍**
କଟକ-୨

ମୂଲ୍ୟ : ଟ ୫୦ , ୦୦

# ଅଭିମତ

ଶ୍ରୀ କୃଷ୍ଣଚନ୍ଦ୍ର ତ୍ରିପାଠୀ, ପାଇକ କବି, କବି କୁଟୀର
ଗ୍ରା/ପୋ:ଅ.—ଖ୍ରୀମପୁର, ବାଣପୁର
ଜି—ଖୋର୍ଦ୍ଧା,

[ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ ରାଜ୍ୟପାଳ ଶ୍ରୀଯୁକ୍ତ ସତ୍ୟନାରାୟଣ ରେଡ୍ଡୀଙ୍କଠାରୁ "ଅତିବଡ଼ି ଜଗନ୍ନାଥ ଦାସ" ପୁରସ୍କାରପ୍ରାପ୍ତ । ]

କବି ଶ୍ରୀ ଲୋକନାଥ ମିଶ୍ର, ଓଡ଼ଗାଁଙ୍କର "ମନମରାଳ ଝୁରେ" କବିତା ସଂକଳନର କବିତାଗୁଡ଼ିକ ଶୁଣିଲି । ସେ ମୋ' ବାସଭବନକୁ ଆସି ତାଙ୍କ ରଚିତ କବିତାଗୁଡ଼ିକ ମୋ' ଆଗରେ ଆବୃତ୍ତି କଲେ । ଆବୃତ୍ତି ସମୟରେ ବେଳେ ବେଳେ ତାଙ୍କର ପତ୍ନୀବିଚ୍ଛେଦଜନିତ ଅନ୍ତରର କୋହ ଆସୁଥାଏ । ପତ୍ନୀବିଚ୍ଛେଦଜନିତ ଦୁଃଖ କବିତା-ଗୁଡ଼ିକରେ ସୁସ୍ପଷ୍ଟ ରୂପେ ପରିସ୍ଫୁଟ ହୋଇଛି । ମୁଁ ନିଜେ ବିପତ୍ନୀକ ହୋଇଥିବାରୁ ଶ୍ରୀ ମିଶ୍ରଙ୍କର ଅନ୍ତରର ଦୁଃଖ ମୁଁ ହୃଦୟଙ୍ଗମ କରିପାରୁଛି । ପ୍ରକୃତରେ କବି ତାଙ୍କ ରଚିତ କବିତାଗୁଡ଼ିକରେ ପତ୍ନୀ ବିୟୋଗର ମର୍ମନ୍ତୁଦ ବେଦନାରେ ବ୍ୟଥିତ ହୋଇ ନିଃସଙ୍ଗ ଜୀବନର ସକରୁଣ ଗାଥା ସବୁ, "ମନମରାଳ ଝୁରେ"ରେ ରୂପ ଦେଇଛନ୍ତି ଅତି ସୁନ୍ଦର ଓ ନିଖୁଣ ଭାବରେ । ସେ ପ୍ରକୃତରେ ଜଣେ ଉଚ୍ଚକୋଟୀର ଦରଦୀ କବି । ତେଣୁ ଏକାକୀ ଜୀବନର ନିଃସଙ୍ଗତାକୁ ସହ୍ୟକରି ନ ପାରି ଗାଇଛନ୍ତି—

ମଝି ନଈରେ ମୋ' ବୁଡ଼ିଗଲା ନାବ,
ଉବୁ ଟୁବୁ ହୁଏ ମୁହିଁ !
କଣ୍ଟାଗ୍ରତ ମୋର ଜୀବନ ନାଟିକା
ଯାଉ ନାହିଁ ରହୁ ନାହିଁ ॥

ପତ୍ନୀଙ୍କର ବିଚ୍ଛେଦରେ ବ୍ୟଥିତ ହୋଇ, ଅତୀତର ସ୍ମୃତି ସ୍ମରଣ କରି କବି ଗାଇଛନ୍ତି—

ସପନ କି କେବେ ସତ ହୁଏ କହ ସଖୀ,
ବିତିଛି ସେ ଦିନ ହଜିଛି ବି ସେ ବୟସ,
ମନେପଡ଼େ ଯେବେ ଅତୀତ ଦିନର କଥା
କାହିଁକି କେଜାଣି ହାଇଁପାଇଁ ଖାଲି ଲାଗେ ।

ମନକୁ ଯେତେ ବୁଝାଇଲେ ବୁଝୁନାହିଁ ବୋଲି ଦର୍ଶାଇ କବି ଗାଇଛନ୍ତି—

ଶେଷ ଜୀବନ ମୁଁ ସୁଖେ ବିତାଇବି
ଏଇ ଥିଲା ମୋର ଲକ୍ଷ୍ୟ,
ଶରବିଦ୍ଧ ହେଲି ଅର୍ଦ୍ଧପଥେ ମୁଁ ଯେ
ଛିନ୍ନ ହେଲା ମୋର ପକ୍ଷ,
ହତଭାଗା କବି ମନକୁ ଶାନ୍ତ୍ୱନା
ନ ଦେବାକୁ ବାଟ କାହିଁ ?
ମନ ମୋ ବୁଝେ ନାହିଁ ବୁଝେ ନାହିଁ ।।

ମୋର ଆଶା ଏବଂ ବିଶ୍ୱାସ ସୁଧୀ ପାଠକ-ପାଠିକା ମହଲରେ ଶ୍ରୀ ମିଶ୍ରଙ୍କର ଉକ୍ତ "ମନମଉଳ ଝୁରେ" କବିତା ସଂକଳନ ନିଶ୍ଚୟ ଆଦୃତ ହେବ । କବିଙ୍କର ସାରସ୍ୱତ ସାହିତ୍ୟ ସୃଷ୍ଟିରେ ଉତ୍ତରୋତ୍ତର ଉନ୍ନତି ମୁଁ କାମନା କରୁଛି ।

କୃଷ୍ଣଚନ୍ଦ୍ର ତ୍ରିପାଠୀ
ତା ୧୫ । ୧୨ । ୯୪
କବି କୁଟୀର, ଧାମପୁର, ବାଣପୁର ।

# ଅଭିମତ

ଶ୍ରୀ ସୁରେନ୍ଦ୍ର ମହାନ୍ତି, ଏମ୍. ଏ. ଏମ୍. ଏଡ୍.
ଡିପ୍ଲୋମା ଇନ୍ ଟିଚିଙ୍ଗ ଅଫ୍ ଇଂଲିଶ୍ ଏବଂ କାଶ୍ମୀରୀ
ମୁଖ୍ୟ ସମ୍ପାଦକ—ପଦୋଦକ

ଆଜିକାଲି ଆଧୁନିକା ପରକୀୟା ପ୍ରୀତିର କିଛି ଅଭାବ ନାହିଁ; କିନ୍ତୁ ଏକପତ୍ନୀବ୍ରତ ଧାରଣ କରି, ସଂସାରସାଗରକୁ ଲଙ୍ଘନ କରିବାର ସ୍ୱର୍ଗୀୟ ସୁଧା କେତେଜଣ ଅନୁଭବ କରନ୍ତି ? ପୁଣି ଜୀବନ ଯାହାରେ ଯଦି ପ୍ରାକୃତିକ ବିପର୍ଯ୍ୟୟ ଘଟେ, ଦୈବଦୁର୍ବିପାକରେ ପୁରୁଷ ହୁଏ ବିପତ୍ନୀକ, ତେବେ ତାର ନିଃସଙ୍ଗ ପ୍ରାଣର ଅକଥନୀୟ କ୍ରନ୍ଦନକୁ ସହ୍ୟକରି ସେ କିପରି ଦଦରା ନାବକୁ ଉତ୍ତରଣ ପଥରେ ଚଳାଏ, ତାହା ବ୍ୟକ୍ତ କରିବା ବାସ୍ତବରେ ଅତୀବ ଦୁଃଖଦାୟକ ଓ କଷ୍ଟସାଧ୍ୟ ।

ଭଗ୍ନମାନ୍ତିର ଆହତ ତଥା ଦରଦୀ କବି ଶ୍ରୀ ଲୋକନାଥ ମିଶ୍ରଙ୍କର ୨୮ଟି କବିତା ସମ୍ବଳିତ "ମନମଉଳ ଝୁରେ" ହେଉଛି ନିଜ ବ୍ୟଥା ହୃଦଗ୍ରସ୍ତ ବିଧୁର ପ୍ରାଣର ଏକ ଅନବଦ୍ୟ ଆଲେଖ୍ୟ । ପତ୍ନୀ—ପ୍ରିୟା, ପ୍ରଣୟିନୀ, ଜନନୀ, ଭଗିନୀ ସେ ଥିଲେ ତାଙ୍କର ସବୁକିଛି । ସେ ଅର୍ଦ୍ଧାଙ୍ଗିନୀ, ବର୍ତ୍ତମାନ ତଥା ଭବିଷ୍ୟତର ପଥପ୍ରଦର୍ଶିକା, ସୁଖଦୁଃଖର ଚିରସହଚରୀ, ବାତ୍ୟା ବିକ୍ଷୋଭିତ ନିଝୁମ ରାତିର ସେ ଏକ ଆଶାବାଡ଼ି ଏବଂ ସୁଖ ସମ୍ପଦରେ ସେ ଥିଲେ ଏକ ପୂର୍ଣ୍ଣିମାର ଉଚ୍ଛୁଳା ଜ୍ୟୋତ୍ସ୍ନା । କବି ନିଜର ସ୍ତ୍ରୀଙ୍କୁ ହରାଇ ପରିଣତ ବୟସରେ ସବୁକିଛି ହରାଇ ବସିଛନ୍ତି । ଏଣୁ ପତ୍ନୀ ବିଚ୍ଛେଦ ନେଇ ତାଙ୍କର ଏ ମର୍ମସ୍ପର୍ଶୀ ମୁରଲୀ ମୂର୍ଚ୍ଛନା ତଥା ଅବିରଳ ଅଶ୍ରୁ ତର୍ପଣ । ସଂସ୍କୃତ କାବ୍ୟରେ ବର୍ଣ୍ଣିତ ଅଛି, କିପରି ଅଜ ଏକଦା ଇନ୍ଦୁମତୀଙ୍କୁ ହରାଇ ପାଗଳ ପରିଏ ବିଳପି ଉଠିଥିଲେ—

"ଗୃହିଣୀ ସଚିବଃ ସଖୀମିଥଃ
ପ୍ରିୟ ଶିଷ୍ୟା ଲଳିତେ କଳାବିଧୌ
କରୁଣା ବିମୁଖେନ ମୃତ୍ୟୁନାଂ
ହରତା ତ୍ୱାଂ ବଦ କିଂ ନମେହୃତମ୍ ।"

ବାସ୍ତବରେ ପତ୍ନୀକୁ ଯଦି ଈଶ୍ୱର ଅସମୟରେ ମଣିଷ ପାଖରୁ ଝାମ୍ପି ନେଇ ଯାଆନ୍ତି ତେବେ ଆଉ ମଣିଷର ରହିଲା କ'ଣ ? ଉତ୍ତରଣ ଜୀବନର ଅବଶିଷ୍ଟାଂଶ କେବଳ ଝଲପି ଝଲପି ପାଗଳ ପରିଏ ମୃତ୍ୟୁକୁ ଅଗତ୍ୟା ଆଲିଙ୍ଗନ କରିବାକୁ ହୁଏ । ଏଣୁ ଗାଇଛନ୍ତି—"Our sweetest songs are those, that tell us our saddest stories."

ମୃତ୍ୟୁ ଅନିବାର୍ଯ୍ୟ ! ଈଶ୍ୱରଙ୍କର ମଧ୍ୟ ଧରାବତରଣ ହେଲେ ମୃତ୍ୟୁ ଦ୍ୱାରା କବଳିତ ହୁଏ ତାଙ୍କର ନଶ୍ୱର ଶରୀର । ତଥାପି ସେହି କଣ୍ଟକିତ ପଥରେ ପତ୍ନୀର ଗୁଣ ମହିମାକୁ ଗାଇ ଗାଇ ଉତ୍ତରଣ ପଥରେ ଅଗ୍ରସର ହେବାକୁ ହୋଇଥାଏ । ଏଣୁ କବି ଝଙ୍କାର ତୋଳି ଗାଇଛନ୍ତି—

"ତୋ ଶରୀର ଯେବେ    ନଷ୍ଟ ହୋଇଲା
କେମିତି ସହିବି କହ…
ମୋ' ସୁନା ସଂସାର    ହେଲା ଛାରଖାର
କେମିତି ବଞ୍ଚିବି କହ ।"

ଅକାଳ [redacted]ମୃତ୍ୟୁ ପରେ ଦରଦୀ କବି ଭଗ୍ନହୃଦୟ ହୋଇ ସଜଳ ଅତୀତର ସ୍ମୃତିଚାରଣ କରି ଗାଇଛନ୍ତି—

"ତୁମ ନେଇ କେତେ କଥା ମନେପଡ଼େ
ଭାବନାର ଖିଅ ଅଡ଼ୁଆ ଅଡ଼ୁଆ,
ଇଚ୍ଛା ହୁଏ ଉଡ଼ିବାକୁ ତୁମ ତନୁ ଏଇ ବୁକୁପରେ
ହଠାତ୍ ଆସିଯାଏ କେତେବେଳେ ଦୁଷ୍ଟ ପାହାନ୍ତିଆ ।"

ଜୀବନର ପ୍ରତିଟି ପଦକ୍ଷେପରେ ପତ୍ନୀ ଅଟେ କାୟାର ଏକାଂଶ ଛାୟା । ପତ୍ନୀହରା କବି ନିଃସଙ୍ଗ ଜୀବନର ପ୍ରତି କୋଣ ଅନୁକୋଣରେ ଦେଖିବାକୁ ପାଆନ୍ତି ନିଜ ପତ୍ନୀର ପ୍ରତିଛବି । ଏହି ତିଳତିଣ୍ଡୁଳ ଛାୟାଲୋକ ପଥରେ କବି ନିଜର ଅତୀତ ସ୍ମୃତିଚାରଣ କରି ସାରସ୍ୱତ ଗନ୍ତାଘରକୁ ସମୃଦ୍ଧ କରନ୍ତୁ ଏହାହିଁ ମୋ'ର କାମନା ।

ସୁରେନ୍ଦ୍ର ମହାରଣା
ଓଡ଼ଗାଁ,

# ସ୍ମୃତିର ଉପହାର

ଉର୍ବଶୀ,

କେଉଁ ଅପଦେବତାର ଅଭିଶାପରେ, ତୁମେ ସ୍ୱର୍ଗରୁ ମୋ' ନିକଟକୁ ଆସିଥିଲ । ମତେ ସମସ୍ତପ୍ରକାର ସୁଖ, ସମୃଦ୍ଧି ଓ ଉନ୍ନତିର ଶେଷ ସୋପାନରେ ଚଢ଼ାଇଦେଇ, ନିଜକୁ ତିଳ ତିଳ କରି ଉତ୍ସର୍ଗ କରି, ଦୁଃଖ କଷ୍ଟ ସବୁ ନିର୍ବିକାର ଭାବରେ ସହି ଅତି ଅଳ୍ପରେ ସବୁବେଳେ ତୃପ୍ତିଲାଭ କରି, ପରିଶେଷରେ ମତେ ନିରାଶ କରିଦେଇ ତମେ ଚାଲିଗଲ, ଜୀବନସାରା ତମକୁ ଝୁରିବା ପାଇଁ । ପୁରୀରବାଙ୍କପରି ମୁଁ ଖାଲି ମର୍ମନ୍ତୁଦ ବେଦନାରେ ଛଟପଟ ହେଉଥିବି ଏ ଜୀବନ ଥିବାଯାଏ । ଦେବତା ଆରାଧନା ଏବଂ ସ୍ୱାମୀ ସେବା ତୁମ ଜୀବନର ଶ୍ରେଷ୍ଠ କର୍ମ ଥିଲା । ତମେ ପୁଣ୍ୟବତୀ । ଜୀବନକୁ ସାର୍ଥକ କରି ତମେ ଚାଲିଗଲ ସଧବା ହୋଇ । ମୁଁ ପାପୀ କିନ୍ତୁ ଏ ସଂସାରର ମାୟା ଜଞ୍ଜାଳରେ ବାନ୍ଧିହୋଇ ମୃତବତ୍ ବଞ୍ଚିଛି । ଯାହାପଛେ ମୁଁ ହୁଏ, ଈଶ୍ୱରଙ୍କ ନିକଟରେ ମୋର ଏତିକ ପ୍ରାର୍ଥନା, ତୁମ ଆତ୍ମାର ସଦ୍‌ଗତି ହେଉ । ଆଜ ଯଦି ମୋର ପୁନର୍ଜନ୍ମ ହୁଏ, ତେବେ ତମପରି ସହଧର୍ମିଣୀ ମତେ ଜନ୍ମ-ଜନ୍ମାନ୍ତରେ ମିଳୁ । ସ୍ୱର୍ଗରେ ଥାଇ ତୁମର ସ୍ମୃତି ଉଦ୍ଦେଶ୍ୟରେ ରଚିତ ଏଇ ମୋର "ମନମଉଳ ଝୁରେ" ଅଶ୍ରୁ ଶ୍ରଦ୍ଧାଞ୍ଜଳି, ଗ୍ରହଣ କରିବ ।

। ଇତି ।

ତମର ହତଭାଗ୍ୟ—'ମୁଁ'

ସ୍ଥାନ—ଓଡ଼ଗାଁ

ତା ୧୫ । ୨ । ୯୫ ମାଘ ପୂର୍ଣ୍ଣିମା, ବାର୍ଷିକ ଶ୍ରାଦ୍ଧ ।

ନାମ—**ଉର୍ବଶୀ** (ପିତୃଦତ୍ତ)

**ମଞ୍ଜୁଲା କୁମାରୀ** (ସ୍ୱାମୀଦତ୍ତ)

ଜନ୍ମ—୧୯୪୫ ମେ' ମାସ ୧ ତାରିଖ (ବୈଶାଖ, କୃଷ୍ଣ ଚତୁର୍ଥୀ)

ତିରୋଧାନ—୧୯୯୪ ଫେବୃୟାରୀ ୨୬ ତାରିଖ ମାଘ ପୂର୍ଣ୍ଣିମା

## କୃତଜ୍ଞତା ଜ୍ଞାପନ

ଓଡ଼ିଶାର ରାଜ୍ୟପାଳ ଶ୍ରୀଯୁକ୍ତ ସତ୍ୟନାରାୟଣ ରେଡ୍‌ଡ଼ିଙ୍କଠାରୁ ଓଡ଼ିଶା ସାହିତ୍ୟ ଏକାଡ଼େମୀ ତରଫରୁ "ଅତିବଡ଼ି ଜଗନ୍ନାଥ ଦାସ" ପୁରସ୍କାର-ପ୍ରାପ୍ତ ପାଇକ କବି ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ତ୍ରିପାଠୀ, କବି କୁଟୀର, ଖ୍ରିମପୁର, ବାଣପୁର, "ମନମନ୍ଦିର ଝୁରେ" ପାଣ୍ଡୁଲିପିର କବିତାଗୁଡ଼ିକ ଶ୍ରବଣ କରି ତାଙ୍କର ସାରଗର୍ଭିକ ଅଭିମତ ପ୍ରଦାନ କରିଥିବାରୁ ସେ ମହାଶୟଙ୍କ ନିକଟରେ ମୁଁ ଚିର କୃତଜ୍ଞ ।

ଶ୍ରୀଯୁକ୍ତ ସୁରେନ୍ଦ୍ର ମହାରଣା ଇଂରେଜୀ ଶିକ୍ଷକ ଓଡ଼ଗାଁ ରଘୁନାଥ ବିଦ୍ୟାପୀଠ, ତଥା ମୁଖ୍ୟ ସମ୍ପାଦକ 'ପଦୋଦକ', ତାଙ୍କର ବହୁମୂଲ୍ୟ ସମୟ ଦେଇ 'ମନମନ୍ଦିର ଝୁରେ' ପାଣ୍ଡୁଲିପିଟିକୁ ପାଠକରି ଅଭିମତ ପ୍ରଦାନ କରିଥିବାରୁ ଏବଂ ପ୍ରଣୟମନ୍ଦାକିନୀର ପ୍ରଣେତା କବି ତଥା ପଣ୍ଡିତ ଶ୍ରୀଯୁକ୍ତ ଗଦାଧର କର ସଂକଳନଟିକୁ ସଂଶୋଧନ କରି ଦେଇଥିବାରୁ ମୁଁ ଉଭୟ ମହାଶୟଙ୍କ ନିକଟରେ ଚିରକୃତଜ୍ଞ ।

। ଇତି ।

ବିନୀତ ରଚୟିତା

ତା ୧୫ । ୨ । ୯୫

# ମନମଉଳ ଝୁରେ

ଝୁଲଗଲୁ ଆହା କାହିଁ ଝୁଲଗଲୁ,
ପ୍ରିୟ ପରିଜନ ମନ ଗହନରେ ।
କେତେ ଚିନ୍ତା, ଦୁଃଖ, ଶୋକ ଭରିଦେଲୁ
ଝୁଲଗଲୁ ଆହା କାହିଁ ଝୁଲଗଲୁ ॥

କେତେ ପରିଣରେ ହାହାକାର ଭରି,
ଅକାଳରେ ଭୁବି ଝରି ଫୁଲ ପରି ।
ଅଭିଶପ୍ତା ସମ କାହାରେ ନ କହି
କେତେ ଶୀଘ୍ର ଆହା କାହିଁ ଝୁଲଗଲୁ ॥

ଜୀବନରେ କେତେ ଝଡ଼ ଝଞ୍ଜା ସହି,
ଅନ୍ତରର ଦୁଃଖ କାହାରେ ନ କହି !
ଦେଇଥିଲୁ ଯାରେ ଜନମ ତାଙ୍କର
ସାରିଦେଇ ସୁଖ ଆପେ ସରିଗଲୁ ॥

ଯାହାକୁ ଅଧିକ ସ୍ନେହ କରୁଥିଲୁ,
ନିଜେ ଦୁଃଖ ସହି ସୁଖ ଦେଖୁଥିଲୁ ।
ଝୁରୁଛି ତୋତେ ସେ ଭୁବି ଝରିଗଲୁ
ତା' ମୁଖରୁ ସବୁ ହସ ହରିନେଲୁ ॥

ମନେ ମନେ କେତେ ଆଶା କରିଥିଲି,
ଶେଷ ଜୀବନରେ ସୁଖୀ ହେବି ବୋଲି ।
ସବୁ ଆଶା ମୋର ଆଶାରେ ରଖିଲୁ
ଦୁଃଖ ସାଗରରେ ମୋତେ ବୁଡ଼ାଇଲୁ ॥

ମନମଉଳ ମୋ' ଝୁରେ ଗୁଣ ଗୁଣି,
ଦୁନିଆଁର ସୁଖ ଆଉ ମୁଁ ଚାହୁଁନି ।
ପୂର୍ବଜନ୍ମ କର୍ମେ ଅବା ଅଭିଶାପେ
ନିଜ ସ୍ୱାର୍ଥ ତ୍ୟାଗି ଜୀବନ ତେଜିଲୁ ॥
ଝୁଲଗଲୁ ଆହା କାହିଁ ଝୁଲଗଲୁ !

## କେମିତ ବଞ୍ଚିବ କହ ?

ତୋ ମୁହଁରୁ ଯେବେ ହସ ଲିଭିଗଲା
କେମିତି ସହିବ କହ,
ତୋ ତୁଣ୍ଡରୁ ଯେବେ କଥା ସରିଗଲା
କେମିତି ବଞ୍ଚିବ କହ । ୧ ।

ତୋ ଶରୀର ଯେବେ ନିଶ୍ଚଳ ହୋଇଲା
କେମିତି ସହିବ କହ,
ମୋ ସୁନା ସଂସାର ହେଲା ଛାରଖାର
କେମିତି ବଞ୍ଚିବ କହ । ୨ ।

ତୋପାଇଁକି ଯେବେ କୋକେଇ ବାନ୍ଧିଲେ
କେମିତି ସହିବ କହ,
ବୋହିନେଲେ ଯେବେ ଶ୍ମଶାନକୁ ତୋତେ
କେମିତି ବଞ୍ଚିବ କହ । ୩ ।

ରଇ ପରେ ଯେବେ ତୋ ଚିତା ଜଳିଲା
କେମିତି ସହିବ କହ,
ତୋ' ବିହୁନେ ଘର ଶ୍ମଶାନ ହୋଇଲା
କେମିତି ବଞ୍ଚିବ କହ । ୪ ।

ତୋ'ର ସ୍ମୃତି ସବୁ ମନରୁ ଯାଉନି
କେମିତି ରହିବ କହ,
ତୋ'ର କଥା ସବୁ ଭୁଲି ମୁଁ ପାରୁନି
କେମିତି ବଞ୍ଚିବ କହ । ୫ ।

ତୋ'ପାଇଁ ମୋ ପ୍ରାଣ କେତେ ଯେ ବ୍ୟାକୁଳ
କେମିତି ବୁଝିବୁ କହ,
ଝୁରି ଝୁରି ତୋତେ ମରିଯିବ ନଶ୍ଚେ
'କେମିତି ଜାଣିବୁ କହ ।୬।

ଭାବ ଭାବ ମୋର ଦିନ ସରୁନାହିଁ
କେମିତି ରହିବ କହ,
ଦୁନିଆଁରେ ମୋତେ ଏକା କରି ଗଲୁ
କେମିତି ବଞ୍ଚିବ କହ ? ।୭।



# ନେଇଯା ମୋତେ ତୋ ପାଶେ !

ହାତେ ଥିଲା ତୋର ସୁନା ଶଙ୍ଖା ଆଉ
ମଥାରେ ଥିଲା ସିନ୍ଦୂର,
କି ଦୋଷ କଲି ମୁଁ ଛାଡ଼ି ଚାଲିଗଲୁ
କଲୁ ମତେ ସାତପର । ୧ ।

ସଧବା ହୋଇ ତୁ ଚାଲିଗଲୁ ଏକା
ଅଦୃଶ୍ୟ ଡେଙ୍ଗୁରା ବଜାଇ,
ଜୀବନ ସାରା ମୁଁ ଝୁରୁଥିବି ତୋତେ
ଆଖିରୁ ଲୁହ ଝରାଇ । ୨ ।

ଖାଇ କଉଡ଼ି ମୁଁ କିଣିଲି ତୋ' ଆଗେ
ଶ୍ମଶାନେ ଦେଲି ପଠାଇ,
କେଉଁ ହତଭାଗ୍ୟ ନମରି ବଞ୍ଚିଛି
ନିଃସଙ୍ଗ ଜୀବନ ନେଇ । ୩ ।

ମରଣର ପରେ ତୋ' ଚିତା ଜଳିଲା
ବଞ୍ଚି ବି ଜଳୁଛି ମୁହିଁ,
କି ଲାଭ ପାଇଲୁ ଶେଷ ଜୀବନରେ
ମୋତେ ଏତେ ଦୁଃଖ ଦେଇ । ୪ ।

ଦେଇନାହିଁ କେବେ ସୁଖ ଶାନ୍ତି ବୋଲି
ଦେଲୁ ଯଦି ଏତେ ଦଣ୍ଡ,
ତୋ' ଆଗରୁ ମୁଁ ତ ଚାଲି ଯାଇଥାନ୍ତି
କିଆଁ ବଞ୍ଚାଇଲୁ ପିଣ୍ଡ । ୫ ।

ତୋ' ମନରେ ଏହା ଥିଲା ବୋଲି ମୁହିଁ
ଆଗୁ ନ ପାରିଲି ଜାଣି,
ସେଥିପାଇଁ ସିନା ମୋ ହୃଦୟ ସଦା
ତୋ' ବିଚ୍ଛେଦେ ହୁଏ ହାଣି । ୬ ।

ନିଃସହାୟ କରି ଶେଷ ଜୀବନରେ
ଛାଡ଼ି ମୋତେ ଗଲୁ ଚାଲି,
ଝୁରି ଝୁରି ମୋର ବଦନ ନ ସରିବ
ତୋର ଗୁଣ ସଦା ଘୋଳି । ୭ ।

ତୋ'ର ସୁଖେ ଭୁଲି ଚାଲିଗଲୁ ଯଦି
ଏ ଘର ସଂସାର ଛାଡ଼ି,
"ନେଇ ଯା ତୋ ପାଶେ" ପାରୁନ ମୁଁ ସହି
କାହିଁ ଥିବ ଦୁଃଖେ ପଡ଼ି । ୮ ।



( ୧୯୯୪ ବୈଶାଖ/ଜ୍ୟେଷ୍ଠ ସଂଖ୍ୟା ସମ୍ପର୍କରେ ପ୍ରକାଶିତ )

# ଅଶ୍ରୁତର୍ପଣ

( ସ୍ୱର—କ୍ଷମା ଦଅ ବୋଲି କହୁନାହିଁ ପ୍ରଭୁ )

ଆଖିର ଲୁହରେ ତର୍ପଣ କରୁଛି
ତୁମ ପାଇଁ ନିତି ନିତି,
ପୁଣ୍ୟମୟୀ ଆଗୋ ପତିବ୍ରତା ତୁମ
ଆତ୍ମା ପାଉ ସଦଗତି । ୧ ।
ଦଗ୍‌ଧ ହୁଏ ମୋର ଅନ୍ତର ସର୍ବଦା
ତୁମ କଥା ଭାଳି ଭାଳି,
ଲିଭିଯାଉ ମୋର ଜୀବନ ପ୍ରଦୀପ
ତୁମକୁ ଗୋ ଝୁରି ଝୁରି । ୨ ।
ଯେତିକି ଭାବୁଛି ଭୁଲିବି ତୁମକୁ
ସେତିକି ପଡୁଛ ମନେ,
କିପରି ବଞ୍ଚିବି ଦୁନିଆଁରେ ମୁହିଁ
ଭାବୁଅଛି ଅନୁକ୍ଷଣେ । ୩ ।
ତୁମରି ଧର୍ମରେ ତୁମରି କର୍ମରେ
ସବୁକିଛି ଗଲି ଜିତି,
ସବୁ ଆଶା ତୁମ ପୂର୍ଣ୍ଣ ହେଲାବେଳେ
ଗୁଳିଗଲା ସବୁ ଗ୍ରନ୍ଥି । ୪ ।
ମଝି ନଈରେ ମୋ ବୁଡ଼ିଗଲା ନାବ
ଉବୁଟୁବୁ ହୁଏ ମୁହିଁ,
କଣ୍ଠାଗତ ମୋର ଜୀବନ ନାଟିକା
ଯାଉନାହିଁ ରହୁନାହିଁ । ୫ ।
କାନ୍ଦି କାନ୍ଦି ସବୁ ସରିଗଲେ ଲୁହ
ତଥାପି କାନ୍ଦିବି ନିତି,
"ଅଶ୍ରୁ ତର୍ପଣ" ମୋ ଘେନିବ ସେ'ପୁରେ
ସ୍ନେହମୟୀ ପୁଣ୍ୟବତୀ । ୬ ।

—o—

## ବ୍ୟର୍ଥ ଏ ଜୀବନ !

( [redacted] )

ଜୀବନେ ମୋ ସମସ୍ତର ସୁଅ ଗଲା ବହି,
ଓଲଟ ପାଲଟ ସବୁକିଛୁ ଗଲା ହୋଇ ।
ଧୂମକେତୁ ପରି ଦୁଃଖ ଆସିଲା ଜୀବନେ,
ଲୁଚିଗଲା ସୁଖ ସ୍ୱପ୍ନ ସବୁ କେଉଁ କୋଣେ । ୧ ।

ଦେଇଗଲା ଜୀବନରେ ମୋତେ ଦୁଃଖଭାର,
ଆହା କରିବାକୁ ସାହା କେହି ନାହିଁ ମୋର ।
ଦିଶେ ନାହିଁ ବୁଦ୍ଧି ବାଟ ବଞ୍ଚିବ କପରି,
ଏ' ଜୀବନ ଯିବ ଖାଲି ତାକୁ ଝୁରି ଝୁରି । ୨ ।

ଅଦୃଶ୍ୟ ଡେଙ୍ଗୁରା ବଜାଇ ଚାଲିଗଲା ଦାଣ୍ଡେ,
ଅକାଳରେ ବଜ୍ରପାତ ହେଲା ମୋର ମୁଣ୍ଡେ ।
ଚାଲିଗଲା ତା' ବାଟରେ ହୋଇ ସିଏ ସୁଖୀ,
ଆଜୀବନ କରିଗଲା ମୋତେ ମହାଦୁଃଖୀ । ୩ ।

ସବୁ ସୁଖ ଜୀବନରୁ ମୋର ଗଲା ନେଇ,
ଝୁରିବ ଜୀବନ ସାରା ଲୁହ ମୁଁ ଝରାଇ ।
ଝୁରନ୍ତୁ ବନ୍ଧୁବାନ୍ଧବ ଝୁରନ୍ତୁ ସ୍ୱଜନ,
ଝୁରନ୍ତୁ ସେନେହୀ ସାଙ୍ଗସାଥୀ ବନ୍ଧୁଗଣ । ୪ ।

ଝରିଗଲା ଅକାଳରେ ଝରାଫୁଲ ସମ,
ବୁଝିଲାନି ଦୁଃଖ ମୋର ବିଧାତା ନିର୍ମମ ।
ଏଡ଼ିକି ନିଷ୍ଠୁର ତୁହି ହାଇରେ ବିଧାତା,
ଅସମୟେ ଦେଲୁ ମୋତେ ଏତେବଡ଼ ଚିନ୍ତା । ୫ ।

କପଟ ଭୁଲିବ ତାକୁ ପାରେ ନାହିଁ ଧବ,
ନାଚଯାଏ ଆଖିଆଗେ ତା'ର ପ୍ରତିଛବି ।
ଚଳଚ୍ଚିତ୍ର ସମ ସଦା ତା'ର କର୍ମମାନ,
ପ୍ରତିଭାତ ହୁଏ ମୋ ନୟନେ ନିଶିଦିନ । ୬ ।

ଅତି ଆଦରର ସାନ ପୁଅ ଟୋ' ଶଙ୍ଖାଳୀ,
ଏକୁଟିଆ କରି ତାକୁ ଗଲୁ ଆହା ଭୁଲି ।
ସବୁଅଛି ନାହିଁ ଜଣେ ଲାଗେ ଖାଲି ଖାଲି,
ନିଗୁଟିଆ ଲାଗେ ଘର ଗଲୁ ସବୁ ଛାଡ଼ି । ୭ ।

କେତେ କେତେ ଫୁଲ, ଧୂପ ଧରି ତୁମ ପାଶେ,
ଯାଉଥିଲି ମନ୍ଦିରକୁ ସଦା ସେ ହରଷେ ।
ଆହେ ରଘୁନାଥ ତୁମେ ଏଡ଼ିକି ନିଷ୍ଠୁର,
ଏଇ କିବା ତୁମ ପାଶେ ଥିଲି ଅଳି ତା'ର । ୮ ।

କାଲିପରି ଲାଗେ ମୋତେ ଥିଲି ମୋର ସବୁ,
କି ପାପ ମୁଁ କରିଥିଲି ଘେନିଗଲ ପ୍ରଭୁ ।
ଝୁରି ଝୁରି ଝରିଯାଉ ମୋ' ଜୀବନ ଗତି,
ଏ ଜୀବନ ବ୍ୟର୍ଥ ମୋର ମିଳିଲାନି ଶାନ୍ତି । ୯ ।

—o—

## ବର୍ଷା କବିତା

ମିଶିତ ଯାଇଛୁ ଅଖିଳ ଗଉରବେ ତଥାପି କିପାଇଁ ମନେ-
ପଡ଼େ ବାରମ୍ବାର ତା'ର କଥା ମୋର ଏଇ ଏ ବରଷା ଦିନେ,
ବାରିଦ, ପାରିବ କି ବାର୍ତ୍ତା ଦେଇ ?
ସୁଦୂରେ ପ୍ରିୟାର ନିଭୃତ କକ୍ଷେ ବାତାୟନ ପଥ ଫେଇ,
ବାରିଦ, ପାରିବ କି ବାର୍ତ୍ତା ଦେଇ ? । ୧ ।

ମନେପଡ଼େ ତା'ର ସରସ ବଦନ ଲୁହ ଭିଜା ଆଖି ଦିଓଟି
ଜନ୍ମେ ଜନ୍ମେ ତୁମ ପାଦସେବିକା ମୁଁ ନ ଭୁଲିବ ମୋରେ ପ୍ରିୟଟି,
ଜଳଦ, କହିଥିଲା କେତେ କରି ସେ ।
ମୋ ବିଚ୍ଛେଦେ ସତେ ହେଉଥିବ ଝୁରି ଥିବ ଅବା ରହି ହରଷେ
ଜଳଦ, କହିଥିଲ କେତେ କରି ସେ । ୨ ।

ନିତି ନିତି ମୋର ଆଗମ ପଥକୁ ଚାହିଁଥାଏ କେତେ ସରାଗେ
ଆଶ୍ୱାସ ପାଇ ମୋ' କାମ ବାହାନାରେ ଧାଇଁ ଆସୁଥିଲ ପରା ସେ,
ଅମ୍ବୁଦ, ଏବେ ତା' ସପନ ହୋଇଲା
ସବୁ ତ ଦେଇଛୁ କି ଆଉ ବା ଅଛି ଏକଥା କି ମନେ ଭାବିଲ
ଅମ୍ବୁଦ, ଏବେ ତା' ସପନ ହୋଇଲା । ୩ ।

ସୁନ୍ଦର ତାହାର ମୁଖର ସୁଷମା ଭୁଲି ହେଉ ନାହିଁ ମନରୁ
ଅଜାଡ଼ି ଦେଇଛୁ ଥିଲା ଯାହା କିଛି ସଞ୍ଚିତ ତା' ଅପଘନରୁ,
ନୀରଦ, ଭୁଲି ସେ କିପରି ରହିଲା ?
ଦେହ ଆଉ ମନ ସବୁ କରି ଦାନ ବିରହ କିପରି ସହିଲା
ନୀରଦ, ଭୁଲି ସେ କିପରି ରହିଲା ? । ୪ ।

*

ପୃଥୁଳ ଶଯ୍ୟାରେ ବର୍ତ୍ତୁଳ ବକ୍ଷୋଜ ଥିଲା ଅତି ଶୋଭମୟ
ସୁଗୋଲ ବଦନ ସୁଦୀର୍ଘ ନୟନ ସତେ କେଡ଼େ ଲୋଭମୟ ।
ବାରିଦ, ଗୌରବର୍ଣ୍ଣ ଅଙ୍ଗକାନ୍ତି
ଥା'ନ୍ତା ଯଦି ମୋର ବିହଙ୍ଗର ପକ୍ଷ ଏହିକ୍ଷଣି ଉଡ଼ିଯାନ୍ତି,
ବାରିଦ, ଗୌରବର୍ଣ୍ଣ ଅଙ୍ଗକାନ୍ତି । ୫ ।

କି ଭାବନ୍ତା ମନେ ଦେଖି ସେ ତତ୍‌କ୍ଷଣେ ସପନ ଅବା କି ମଣନ୍ତା
କେଜାଣେ କେତେବା ଉତ୍‌ଫୁଲ୍ଲ ଚିତ୍ତରେ ଚରଣୁ ମୋହର କରନ୍ତା
ଜଳଦ, ସତେ କେବେ ତାରେ ପାଇବି ?
ନିବିଡ଼ ଆଶ୍ଳେଷେ ଗୋଲାପି ଅଧରୁ ସତେ ଅବା ମଧୁ ପିଇବି,
ଜଳଦ, ସତେ କେବେ ତାରେ ପାଇବି । ୬ ।

ବରଷା ରାତିରେ ପ୍ରିୟା ମୋ ସାଥୀରେ ବିତାଇଛି କେତେ ରଜନୀ
ପକାଉଥିବ କି ମୋର କଥା ମନେ ଏକାନ୍ତରେ ପ୍ରାଣ ସଜନୀ,
ନୀରଦ, ଏଇ ଏ ବରଷା ଦିନରେ,
ଦେଇଛି ସେ ଯାହା ପ୍ରାଣ ଭରି ମୋତେ ପଡ଼ଇ ତାହା ମୋ ମନରେ
ନୀରଦ, ଏଇ ଏ ବରଷା ଦିନରେ । ୭ ।



# ଝୁରି ମୁଁ ମରେ

ନଥାଉ ପଛେ ତୁମ ଉର୍ବଶୀ ରୂପ ଶ୍ରୀରି,
ନ ହୁଅ ପଛେ ତୁମେ ଅପ୍‌ସରା ସମସରି ।
ନଥାଉ ପଛେ ତୁମ ଅଧିକ ଶିକ୍ଷା ଦୀକ୍ଷା
ନହୁଅ ପଛେ ତୁମେ ରୂପସୀ ଆଧୂନିକା ॥

ନ ଜାଣ ପଛେ ତୁମେ ଷ୍ଟାଇଲ୍ କଥା କହି,
ନ ପଢ଼ ପଛେ ତୁମେ କେବେ ନଭେଲ ବହି ।
ତଥାପି ତମେ ମୋତେ ଲାଗ ଗୋ ଭାରି ଭଲ
ସଖୀ ତୁମକୁ ପାଇ, ନଥିଲା ଦୁଃଖ ମୋର ॥

ରାଗେ ମୁଁ ତୁମ ପରେ କେତେ ଯେ କଥା କହେ,
ମନରେ ତୁମ ସତେ କେତେ ଗୋ ବ୍ୟଥା ହଏ ।
ସରଳା ଲଳନାଗୋ ଭାବନା କିଛି ତୁମେ
କରନା ଅଭିମାନ ମୋ'ପରେ କେବେ ହେନେ ॥

ସବୁ ଗୋ ନୀରବରେ ତୁମେ ତ ସହିଯାଅ,
ଆଖି ଲୁହରେ ଖାଲି ଦୁଃଖ ଗୋ କହିଯାଅ ।
ତୁମେ ତ ଥିଲ ସାଧ୍ୱୀ ପତିଭକ୍ତା ରମଣୀ
ତୁମକୁ ପାଇ ଦୁଃଖ ନଥିଲା ମୁଁହି ଜାଣି ॥

ଥାଅ ଗୋ ତୁମେ ବସି ନୀତି ମୋ' ପଥ ଚାହିଁ,
ହେଲେ ଟିକିଏ ଡେରି ଭାବ ଗୋ ବ୍ୟସ୍ତହୋଇ ।
ନଥାଅ କିଛି ଖାଇ ମୁଁ ଆସିବାଯାଏ
ଏତେ ସ୍ନେହର ଦାନ ତୁମକୁ ମୁଁ କି ଦିଏ ?

ଯାଇଛ ତୁମେ ଦେଇ ମାତୃତ୍ୱର ଯେ ଦାନ,
ପାଇ ଗୋ ସେମାନଙ୍କୁ ସୁଖୀ ମୁଁ ଚିରଦିନ ।
ଶେଷରେ ଗଲ ଚାଲି ମୋତେ ଗୋ, ଠକିଦେଇ ।
ଝୁରି ମୁଁ ମରେ ଖାଲି ତୁମରି ଗୁଣ ଗାଇ ॥

—o—

## "ସିଏ କି ଜାଣିବ"

( ସ୍ୱର—କହିବୁ ଜଣକୁ ଦୁଃଖ )

କାହାକୁ କହିବ ଦୁଃଖ, ଆଉ କେ ଶୁଣିବ,
ଘୁଞ୍ଚି ଯାଇଥିଲ ସିଏ ଦୁଃଖେ ଦୁଃଖୀ ହେବ । ୧ ।

ମନ ଦୁଃଖେ ବସିଥିଲେ କିଏ ବୁଝାଇବ,
କ୍ଲାନ୍ତ ହୋଇଥିଲେ କିଏ ଘସି ମୋଡ଼ି ଦେବ । ୨ ।

ଖାଇ ନଥିବାଯାଏ କେ ଉପୁଁ ବସିଥିବ,
ମନ ଜାଣି ରାନ୍ଧିବାଢ଼ି କିଏ ପରସିବ । ୩ ।

ଯେତେ ଗାଳିଦେଲେ କିଏ ମନେ ନ ଧରିବ,
ନନ୍ଦନ ପରି କିଏ ହସି କଥା ହେବ । ୪ ।

ରୋଗରେ ପଡ଼ିଲେ କିଏ ଯଗି ବସିଥିବ,
ଦିନ ରାତି ନ ଶୋଇ କେ ସେବା କରୁଥିବ । ୫ ।

ସ୍ୱାମୀ ସେବା ଜୀବନର ବ୍ରତ କେ ଭାବିବ,
ପୁଅ ଝିଅ ପାଇଁ କିଏ ସଦା ବ୍ୟସ୍ତହେବ । ୬ ।

କଷ୍ଟ ସହି ଓଷା ବ୍ରତ କିଏ ବା କରିବ,
ପରିବାରର ମଙ୍ଗଳ ସଦା କେ ଭାବିବ । ୭ ।

ଝରୁଛି ସର୍ବଦା ଲୁହ କିଏ ବା ଦେଖିବ
ଝୁରି ଝୁରି ଝରିଯିବ ସିଏ କି ଜାଣିବ । ୮ ।



# ମୁଁ ଉଦ୍‌ଭ୍ରାନ୍ତ

କବିତା ମୁଁ ଲେଖେ କେତେ
ସାଥୀ ମୋର ଜାଣିଁ କେତେଦୂରେ,
ସିଏ କଣ ଜାଣେ ସତେ
ତା' ଲାଗି ମୁଁ ନିତି କେତେ ଝୁରେ ॥
ସତେ କଣ ଭାବୁଥିବ,
ସିଏ ନିତି ମୋତେ ତା' ମନରେ
ଲୁହ କଣ ଆସୁଥିବ,
ମୋର ଲାଗି ତା' ଆଖି କଣରେ ॥
ମୁଁ ସିନା ଭାବୁଛି ତାକୁ,
ସିଏ କଣ ମତେ ଭାବୁଥିବ ।
ସ୍ୱର୍ଗପୁରେ ଆନନ୍ଦରେ
କେତେ ସୁଖେ ସିଏ ବା ନଥିବ ॥
କେତେବେଳେ କେମିତିବା
ମୁହିଁ ଯଦି ପଡୁଥିବ ମନେ ।
ଭାବୁଥିବ ଦୁନିଆଁ ର
ଉଦ୍‌ଭ୍ରାନ୍ତ ପଥିକ ଏ ଜଣେ ॥
ଏତେ ସବୁ ଦେଖି କିଆଁ
ମନେ ଯଦି ଏତେ କଥା ଥିଲା ।
ତା'ର ଲାଗି ଭଲ ଖାଲି
ଦୁଃଖେ ମୋର ନିଶିଦିନ ଗଲା ॥
ଭୁଲି ନାହିଁ ଆଜି ମିଛେ,
ଭୁଲିଯା ମୋତେ ଗୋ ମନରୁ ।
ମୁଁ ପଛେ ଝଡ଼ିବ ଝୁରି
ବନଫୁଲ ପରି ଗୋ ବନରୁ ॥
ଝୁରି ଝୁରି ଝଡ଼ିଯାଏ,
ସରିଯାଉ ଜୀବନର ଗତି ।
ଏ' ଜୀବନେ ଦେଖିନି ତ
ସେପାରେ ବା ମିଳିପାରେ ଶାନ୍ତି ॥

—o—

## ଅବୁଝା ମନ ମୋ ବୁଝେ ନାହିଁ

( ସ୍ୱର—ଅନ୍ତରେ କାନ୍ଦେ ବାହାରେ ହସେ ମୁଁ )

ଯେତେ ବୁଝାଇଲେ ଅବୁଝା ମନ ମୋ
ବୁଝେ ନାହିଁ ବୁଝେ ନାହିଁ, ମନ ମୋ······
ଆଶାର ମୀନାର [illegible] ସାକାର ନୋହିଲା
ଏ ସାରା ଜୀବନ ପାଇଁ, ମନ ମୋ······।

କରି ନ ଥିଲି ମୁଁ କଳପନା କେବେ
ସ୍ୱର୍ଗ ସୁଖ ପାଇବାକୁ,
ନ ଥିଲା କାମନା ବଡ଼ ଲୋକ ହୋଇ
ଦୁନିଆଁରେ ବଞ୍ଚିବାକୁ ।
ଗୁମୁରି ମରେ ମୁଁ ଆହତ ଅନ୍ତରେ
ମୋ ମନ ବେଦନା ପାଇଁ,
ମନ ମୋ·········।

ଶେଷ ଜୀବନ ମୁଁ ସୁଖେ ବିତାଇବି
ଏଇ ଥିଲା ମୋର ଲକ୍ଷ୍ୟ,
ଶରବିଦ୍ଧ ହେଲି ଅର୍ଦ୍ଧପଥେ ମୁଁ ଯେ
ଛିନ୍ନ ହେଲା ମୋର ପକ୍ଷ ।
ହତଭାଗା କହି ମନକୁ ସାନ୍ତ୍ୱନା
ନ ଦେବାକୁ ବାଟ କାହିଁ,
ମନ ମୋ·········।

ଗୋଲାପର କଳି ନେଇ ବକ୍ଷେ ତୋଳି
ଏ ଦୁନିଆଁ ବଗିଚାରୁ,

ସୌରଭରେ ତାର ଭୁଲି ସବୁ ଦୁଃଖ
ସହିବ କଷଣ ଗୁରୁ ।
ବ୍ୟର୍ଥ ହେଲା ମୋର ମନର ବାସନା
ବଞ୍ଚିବାରେ ସୁଖ ନାହିଁ,
ମନ ମୋ.........।

ମୃତବତ୍ ବଞ୍ଚି ରହିଛି ମୁଁ ସଞ୍ଚି
ମୋ ଜୀବନ ଆନ ପାଇଁ,
ନାହିଁ ସରସତା ନାହିଁ ମଧୁରତା
ମୋ ଜୀବନେ କିଛି ନାହିଁ ।
କାମନା ମୋହର ଅପୂର୍ଣ୍ଣ ରହିଲା
ଏ ସାରା ଜୀବନ ପାଇଁ,
ମନ ମୋ.........।



# ମୋ କଥା କି ସତେ ମନେପଡ଼େ

ମୋ କଥା କି ସତେ ମନେପଡ଼େ ସଜନୀରେ,
ଦୀର୍ଘଦିନ ତଳର ସେ ବିଗତ ଅତୀତ,
ଯେଉଁଦିନ ମୁଁ ତୁମ ସାଥେ ଏକା ଶଯ୍ୟାପରେ,
ଜନ୍ମିଗ୍ର ରଜନୀ ଯାପି ଚୁମ୍ବୁଥିଲି ଓଠ ॥

ନବଢ଼ ବାହୁ ବନ୍ଧନେ ଭିଡ଼ି ବକ୍ଷେ ତନୁ,
କିବା ସୁଖ ପାଉଥିଲି ଆଜ ମୁଁ ଭାବୁଛି,
ଯେ ଆନନ୍ଦ ଲଭୁଥିଲି ତୋ ଚୁମ୍ବି ବଦନୁ,
ବ୍ୟଥାଭରା ପ୍ରାଣେ ଆଜ ତାହା ମୁଁ ଖୋଜୁଛି ॥

କଅବା ଗୋ ଦେଲ ମୋତେ ହେଲି ମୁଁ ପାଗଳ,
ମୋ ମନରେ ଜାଗେ ଦ୍ୱନ୍ଦ୍ୱ ସେଇ କଥା ନେଇ,
କିବା ସ୍ନେହ ପାଇଁ ଏତେ ହେଲି ମୁଁ ବ୍ୟାକୁଳ,
କି ପାଇଲ କୁହ ସଖୀ ପ୍ରାଣେ ବ୍ୟଥା ଦେଇ ?

ତୁମର ଅଭୁଲା ସ୍ମୃତି ହୃଦେ ଅଛି ଗାର,
ଭୁଲିବି ଯେତିକି ଭାବେ ସେତେ ପଡ଼େ ମନେ,
ଫୁଲ ସିନା ଭୁଲିଯାଏ କରିଦେଏ ପର,
ଅଳି ମାତ୍ର ଗୁହେଁ ଯଦି ଚୁମ୍ବିଥାଏ ଦିନେ ॥

ସେପରି ଗୋ ତୁମ କଥା ଭାବେ ନିଶିଦିନ,
ବିରହ ବ୍ୟଥିତ ମୋର ନୟନର ନୀରେ,
ତୋ ସ୍ମୃତି ରଖିଛି ଧରି ଏ ମୋହର ମନ,
ମୋ କଥା କି ସତେ ମନେପଡ଼େ ସଜନୀରେ ?

—o—

# ଅନୁଶୋଚନା

କେତେ ମୁଁ ତୁମକୁ ଭଲ ପାଇଲି ଗୋ
ସେନେହ ଟିକିଏ ପାଇଁ
ଏ ଦୁନିଆ ଖାଲି ମାୟା ମରୁବାଲି
କା କଥା କେ ବୁଝୁ ନାହିଁ ।
ସେନେହ.........। ୧ ।

ରହିଲି କେତେ ମୁଁ ଆଶାର ମୀନାର
ସପନରେ ଧାଇଁ ଧାଇଁ,
ମିଳି ନାହିଁ କିଛୁ କେବଳ ମୁଁ ଅଛୁ
ଜୀବନେ ଝୁରିବା ପାଇଁ ।
ସେନେହ.........। ୨ ।

ଏଇମିତି ଯଦି ଶୁଖିଯିବ ଦିନେ
ମୋ ଜୀବନ ଭରା ନଈ,
କିଆଁ ଦେଲି ପ୍ରଭୁ ଜନମ ଯେ ମୋତେ
ଫୁଟିଲିନି ଯଦି କଇଁ ।
ସେନେହ.........। ୩ ।

—o—

## ଆଶ୍ୱାସନା

ଯାହା ଲାଗି ଏତେ ବ୍ୟଥା ବ୍ୟାକୁଳତ ହୃଦୟରେ,
ନିତି ନିତି କେତେ ସହିଲି ମୁଁ ହବା ରଜନୀ ।
ଯାହାଲାଗି ମୋର ବେଦନା ବଧୂର ଅନ୍ତରରେ,
ବହିଗଲା କେତେ ଆଶା ଉନ୍ମାଦନା ପ୍ଲାବନୀ ।

ସିଏ ବାନ୍ଧିନେଲା କୁହୁକ ଲଗାଇ ମନକୁ,
ଭରିଦେଲା ପ୍ରାଣେ କେତେ ଯେ ନୂତନ କାମନା
ସିଏ କହିଗଲା ଭଲପାଏ ପ୍ରିୟ ତୁମକୁ
ପାଇଲି ଯା ଲାଗି କେତେଯେ ଅସୀମ ଯାତନା ।

କେତେ ଯେ ଅକୁହା କଥା ସେ କହିଲା ଗୋପନେ,
ହେଲା ଦିଆନିଆ କେତେ ଆଲିଙ୍ଗନ ଚୁମ୍ବନ ।
କେତେ ଯେ ଦେଖିଲି ତା' ମୂରତି ନିତି ସପନେ
ଆଖିର ଲୁହରେ ଭରିଗଲା କେତେ ନୟନ ॥

ଭୁଲିବି ମୁଁ ତାକୁ ଭୁଲିବି ଭୁଲିବି,
ସାଥୀହରା କରି ସିଏ ଯଦି ଗଲା ଦୂରେଇ ।
କାହିଁ ମିଛେ ଆଜି ନିତି ତାକୁ ଏତେ ଝୁରିବି ।
ନାହିଁକି ଧଇର୍ଯ୍ୟ ଏତିକି, ମୁଁ ତୁଷ ହୋଇ ॥

—o—

# ତା' ଲାଗି ଲେଖେ ମୁଁ କବିତା

ପଢ଼ିବ କି ସିଏ ଯା'ପାଇଁ ଲେଖେ କବିତା,
ବୁଝିବ କି ସତେ ସେ ମୋ' ହୃଦୟର ବ୍ୟଥା ।
ଯା'ପାଇଁ ଲେଖଣୀ ନିତି ନିତି ମୂର୍ତ୍ତି ଧରେ,
ସିଏ କି ପଢ଼ିବ ମୋ' କବିତା କେବେ ଥରେ ॥

ଯାହାପାଇଁ ପ୍ରାଣ ମୋର ହୁଏ ବ୍ୟାକୁଳିତ,
ଯାହାପାଇଁ ସଦା ବ୍ୟଥିତ ହୁଏ ମୋ' ଚିତ୍ତ ।
ମନେ କି ପକାଉଥିବ ସେ ଅତୀତ କଥା,
ମୋ' ବିରହ ଲାଗି ପାଉଥିବ ସେ କି ବ୍ୟଥା ॥

ଭୁଲିଯାଇଥିବ ମୋତେ ସେ କି ତା' ମନରୁ,
ବିଚ୍ଛେଦ ହେଲାଣି ତା'ର ମୋର ଯେ ଦିନରୁ ।
ତା'ର ସୁଖେ ସିଏ କାଟୁଥିବ ତା' ଜୀବନୀ,
ଦୁଃଖେ ମୁଁ ବିତାଏ ଗୁଣ୍ଠି ଗୁଣ୍ଠି ତା' ସରଣୀ ॥

ସେ କି ସତେ କେବେ ଆସିବ ଆଜ ମୋ' ପାଶ,
ଦେଖିବି କି ସତେ ତା' ଓଠରେ ମୃଦୁହାସ ।
କହିବକି ସତେ ଭୁଲିନି ତୁମକୁ ପ୍ରିୟ,
ନିବିଡ଼ ଆଶ୍ଳେଷେ ମୋରେ ଗାଢ଼ ଚୁମ୍ବ ଦିଅ ॥

ଭୁଲୁ ପଛେ ସିଏ ତା' ପାଇଁ ଲେଖେ କବିତା,
ଜାଣିବାକୁ ସିଏ ତା'ଠାଇଁ ମୋର ମମତା ।
କବିତା ମୁଁ ଲେଖେ ତା'ପାଇଁ ନିରୋଳେ ବସି,
କାଳସ୍ରୋତେ ସବୁ ଗଲେ ଯାଉପଛେ ଭାସି ॥

—o—

# ତୁମ ପଥ ଚାହିଁବ

କାହିଁକି ତୁମ କଥା ଶୁଣିଲେ ମୁଁ ହବାନଶି,
ଜାଣେନା ମୁଁ ତ ଜମା ଜାଣେନା ।
କାହିଁକି ଏତେ ଭଲ ପାଇଲି ତୁମକୁ ମୁଁ,
କହିକି ପାରିବି ଗୋ ଲଳନା । ୧ ।
କାହିଁକି ତୁମ ରୂପ ପାଗଳ କଲା ମୋତେ,
ଘାରୁଛି ଅବିରତ ମନରେ ।
ନାଚଇ ତୁମ ଛବି ନୟନ ଆଗେ ମୋର,
ସପନ ଦେଖେ ନିଶି ଦିନରେ । ୨ ।
କାହିଁକି ଭୁଲିଲି ମୁଁ ତୁମ ସେ ଚାହାଣୀରେ,
ଥିଲା କି କୁହୁକ ସେ ନୟନେ ।
ନୁହଁଇ କଳ୍ପି ତାହା ସପନେ ଦେଖେ ଯାହା,
ଲାଗେ ଗୋ ସବୁ ସତ ଶୟନେ । ୩ ।
କାହିଁକି କରେ ଆଶା ପାଇବି ବୋଲି ଆଜ
ତୁମେ ତ ଅଟ ହେମ ହରିଣୀ ।
ଝୁରି ମୁଁ ମରେ ନିତି, ନିଶି ଓ ଦିବସରେ,
ଅନାଇ ଖାଲି ତୁମ ସରଣୀ । ୪ ।
ତୁମେ ତ ବୁଝିଲନି ମରମ ବ୍ୟଥା ମୋର,
ଏକାକି ଗଲି ଝୁଲି ସେ ପୁରେ
କିପରି ବଞ୍ଚିବି ମୁଁ ନିରତେ ଭାବେ ବସି
ତୁମରି କଥା ଖାଲି ଅନ୍ତରେ । ୫ ।
ନ ଚାହଁ ପଛେ ମୋତେ, ନ ଆସ ମୋ’ ସମୀପେ
ତଥାପି ତୁମ ପଥ ଚାହିଁବି ।
ଗୁମୁରି ତୁମ କଥା ନୟନୁ ନୀର ଢାଳି,
ଦୁଃଖେ ମୋ’ ତରଣୀଟି ବାହିବି । ୬ ।

—o—

# ତମେ କହୁଥିଲ

ସ୍ନିଗ୍ଧ ବଦନେ ନଗୁଇ ଭ୍ରମର ଭ୍ରୂରୁ
ଗୋଲପି ଅଧରେ ଫୁଟାଇ ହସର ରେଖା,
ଭରା ଯଉବନେ ପ୍ରେମର ଜୁଆର ଭରି
ତମେ କହୁଥିଲ—ତମେ ମୋ ପରାଣ ସଖା ।

ବସନ୍ତାଗମେ ଫୁଟାଇ ଚମ୍ପକ ହାସ
କେଳି କୁଞ୍ଜକୁ କେତେ ରଙ୍ଗେ ଥିଲ ମାତି,
ମନ୍ଦ ସମୀରଣେ ଛୁଟାଇ ସୁରଭି ହାସ
ତମେ କହୁଥିଲ—ତମେ ମୋ ପରାଣ ସାଥୀ ।

ସୁଲଳିତ ଗୁରୁ ଅଙ୍ଗ ସୁଷମା ନିରେଖି
ମନ ଅଳି ଯେବେ ଛୁଟିଲା ପାଗଳ ହୋଇ,
ଚୁମ୍ବିବାକୁ ମଧୁ ଗୁରୁ ବଧୂର ଅଧରୁ
ତମେ କହୁଥିଲ—ଆସ ମୋ ପରାଣ ସାଇଁ ।

ରାକା ରଜନୀରେ ନଭେ ଦେଖି ପୂର୍ଣ୍ଣ ଶଶୀ
ତୃଷିତ ଅନ୍ତରେ ଆଗମନେ ଚାହିଁଥାଅ,
ନିବିଡ଼ ଆଶ୍ଳେଷେ ଜଡ଼ାଇ ତନୁରେ ତନୁ
ତମେ କହୁଥିଲ—ଭୁଲିବନି ମୋରେ ପ୍ରିୟ ।

ସପନ ପରାଏ ବିତିଛି ଅତୀତ ସଖୀ
ମନେପଡ଼େ ତୁମ ସ୍ନେହଭରା ସେଇ କଥା,
କାହିଁ କେତେ ଦୂରେ ତମେ ଯାଇଅଛ ଲୁଚି
ତମେ କହୁଥିଲ ଯାହା ଦିଏ ପ୍ରାଣେ ବ୍ୟଥା ।

—o—

# ସେ ଏକ ଶୀତ ପାହାନ୍ତ

ଶିଶିର ପଡୁଛି ଆଜ ରେଣୁ ରେଣୁ ହୋଇ,
ଟପ୍ ଟପ୍ ଝରେ ବର୍ଷା ଗଛମୂଳେ ଖାଲି
ମନେହୁଏ ସୂର୍ଯ୍ୟ ଆଜ ପଡ଼ୁଛି ଘୁମାଇଁ,
ସିକ୍ତ ହୋଇଅଛି ଆଜ ଚଲାପଥ ବାଲି । ୧ ।

ଉଇଁଲେ ସୂରୁଯ ସିନା ଆସିଲା ଆଲୋକ,
ମନେପଡ଼େ ତୁମ କଥା ଆଜ ଏ ମୁହୂର୍ତ୍ତେ,
ଉଭେଇଲା ସତେ ଆହା ତୁମ ବନ୍ଧୁଯାକ,
ତୁମ କଥା ଭାବି ପ୍ରାଣ କାନ୍ଦଉଠେ ଆର୍ତ୍ତେ । ୨ ।

ଏମିତି ଗୋ ଦିନେ ତୁମେ ଦେଲ ମୋତେ ଦେଖା,
କିଣିନେଲ ମନପ୍ରାଣ କଲ ଆପଣାର,
କହିଥିଲ ଭୁଲିବନି ମତେ ପ୍ରାଣସଖା,
କେମିତି ଗୋ ଭୁଲିଗଲ କଲ ମତେ ପର । ୩ ।

ଭଲ ପାଇବାରେ ସତେ ଏତେ ଗୋ ବେଦନା,
ଜାଣେନା, ତଥାପି କିଆଁ ପାଇଲି ମୁଁ ଭଲ,
ତୁମ କଥା ଭାବି ଖାଲି ଭୋଗେ ମୁଁ ଯାତନା,
ଭଲ ପାଇ ଆଜ ମୁହିଁ ହୁଏ କଲବଲ । ୪ ।

ଏ ଦୁନିଆଁ ଖାଲି ମିଛ, ସତ ହୋଇପାରେ,
ଯାହାକୁ ପାଇଲି ଭଲ ଆଜ ସେ ନାହାନ୍ତି,
ଭଲ ପାଇବାରେ ମୋର ଭୁଲ ଥାଇପାରେ,
ମନେପଡ଼େ ତୁମ କଥା ଏ ଶୀତ ପାହାନ୍ତ । ୫ ।

—o—

# ତଥାପି ଖୋଜୁଛି

ଶ୍ମଶାନରେ ଜଳାଇଲି ତୁମକୁ ମୁଁ ଯେବେ,
ଜଳି ଜଳି ମରୁଛି ମୁଁ ବଞ୍ଚି ଅନୁକ୍ଷଣେ ।
ଭୁଲିବାକୁ ଚେଷ୍ଟା କରି ବେଶୀ ମୁଁ ଝୁରୁଛି,
ମରିବାକୁ ଇଚ୍ଛା କରି ନମରି ବଞ୍ଚୁଛି ।

କାହିଁକି ଏପରି ଦୁଃଖ ଦେଲ ଗୋ ସୁନ୍ଦରୀ,
କରିଥିଲି ଜୀବନେ ମୁଁ କି ଦୋଷ ତୁମରି ।
ଦୋଷ ଯଦି ଥିଲା ମୋର କ୍ଷମା କି ନ ଥିଲା ?
ଏତେ ବଡ଼ ଦଣ୍ଡଦେବା ଉଚିତ କି ହେଲା ?

ବ୍ୟାଘ୍ରର ଝୋଷିବା ବାଧେ ମରଣରୁ ବଳି,
ସେପରି ଜୀବନେ ମୁଁ ଗୋ ମରେ ସଦା ଜଳି ।
ଲୋକ ଜାଣିବାକୁ ମୁଁ ତ ବଞ୍ଚିଅଛି ଖାଲି,
ତୁମ ପାଶେ ମନ ପ୍ରାଣ ଯାଇଛି ମୋ ଚାଲି ।

ବଞ୍ଚିବାକୁ ତିଳେ ଇଚ୍ଛା ନାହିଁ ଗୋ ମୋହର,
ବିଷ ପରି ଲାଗେ ମୋତେ ଏ ଘର ସଂସାର ।
ମନ ଚାହେଁ ତୁମ ପାଶେ ଯିବା ପାଇଁ ଉଡ଼ି,
ଏକା କରି ଗଲ ମୋତେ ଦୁନିଆରେ ଛାଡ଼ି ।

ତୁମ ପାଇଁ ମନ ମୋର ସଦା ଗୋ ବ୍ୟଥିତ,
ଦୁଃସହ ଦୁଃଖେ ଅନ୍ତର ହୁଏ ଗୋ ମଥିତ ।
ଦୁନିଆଁରେ ବଞ୍ଚିବାଟା ଦୁର୍ବିସହ ଆଜି,
ମୋର ବୋଲି ଯାହା ଥିଲା ଗଲା ସବୁ ହଜି ।

ହଜାଇ ଦେଇ ମୁଁ ଆଜି ବିବ୍ରତ ହେଉଛି,
ପାଇବନି ଜାଣିଛି ମୁଁ ତଥାପି ଖୋଜୁଛି ।

—o—

# ଝୁରିବାକୁ ହେଲା ଖାଲି

ତୁମକୁ ପାଇଥିଲି ଭଲ କେତେ ଜୀବନେ,
ଝୁରିବାକୁ ହେଲା ଖାଲି ନିତି ବସି ବିଜନେ ।

ତୁମ ମୁଖ ଚନ୍ଦ୍ରମାରୁ ଝରୁଥିଲା ଜୋଛନା,
ମୋ ବୀଣାତନ୍ତ୍ରୀରେ କେତେ ଭରିଥିଲା ମୂର୍ଚ୍ଛନା ।
ଲାଗେ ସବୁ ସ୍ୱପ୍ନପର
କାହିଁ ଗଲା ଅପସର
ତୁମ ରୂପ ନାଚେ ସଦା ନୟନେ
ତୁମକୁ ମୁଁ ପାଇଥିଲି ଭଲ କେତେ··· । ୧ ।

ତୁମ କଥା ଆଣୁଥିଲା ପ୍ରାଣେ କେତେ ପୁଲକ,
ତୁମ ହସ ଭରିଥିଲା ମନେ କେତେ ଝଲକ ।
ଭୁଲୁଥିଲି ଆପଣାକୁ
ପାଇ ପାଶେ ମୁଁ ତୁମକୁ
ସୁଖେ ରହି ଦୁଃଖ କିଆଁ ଦିଅ ଏ ମୋ ପରାଣେ
ତୁମକୁ ମୁଁ ପାଇଥିଲି ଭଲ କେତେ··· । ୨ ।



# ପ୍ରଥମ ମିଳନ ଓ ଶେଷ ବିଦାୟ

ଅତୀତର ଯେତେ ଶ୍ରେଷ୍ଠ ପ୍ରେମିକ ପ୍ରେମିକା,
ଶକୁନ୍ତଳା ଦୁଷ୍ମନ୍ତ ଓ କେଦାର ଗଉରୀ,
ଉର୍ବଶୀ ଓ ପୁ ରୁରବା ଆଜ ଯେତେ ଯିଏ,
ପାଇଥିଲେ ଭଲ ପରସ୍ପରେ ପ୍ରେମ ସ୍ନେହେ,
ତୁମଠି ମୋ ପ୍ରେମ ସଖୀ ତା'ଠାରୁ ଅଧିକ,
ଥିଲ କି ନ ଥିଲ ବୋଲି ଅନ୍ତରେ ମୋହର,
ଭୁଲେ ଆଜ ମନମାନଦଣ୍ଡେ ପ୍ରାଣ ସଖି ॥

ଶ୍ରାବଣର ଶେଷ ଜହ୍ନ ପରିରେ ସୁନ୍ଦରୀ,
ଉଜ୍ଜଳିଲ ଯେବେ ନେଇ ଯୌବନର କାନ୍ତି,
ବସ୍ତ୍ରର ଉହାଡ଼େ ରଖି ବର୍ତ୍ତୁଳ ଉରଜ,
ଲୁଚୁଇଲେ ଯେତେ ଯେବେ ନ ମାନିଲ ମନା,
ମୃଦୁ ହାସେ ଓଠେ ଯେବେ ଫୁଟିଲ ଗୋଲାପ,
ଯଉବନ ଲାଗି ଯେବେ ଦେହ ମନ ପ୍ରାଣ,
ଘାରି ହେଲ କାହା ପାଇଁ ନିର୍ଜନେ ଏକାନ୍ତେ,
ସେଇ ସେ ମଧୁର ଲଗ୍ନେ ତୁମ ସାଥେ ମୋର,
ଜୀବନ ସଙ୍ଗିନୀ ରୂପେ ପ୍ରଥମ ମିଳନ ॥

କରି କରି ହସ ଆଜ ପିଲାଳିଆ କଥା,
ଥିରି ଥିରି ଭୁଲି ଆଜ ମାନ ଅଭିମାନ,
ବନ୍ଧୁର ଜୀବନ ପଥେ ଯେତେ ଖାଲ ଢିପ,
ସବୁ ଡେଇଁ ସବୁ ସହି ଚାଲି ମୋର ସାଥେ,
ସରସ କରିଲ ମୋର ନିରସ ଜୀବନ,
ଭାଙ୍ଗିଗଲା ସ୍ୱପ୍ନ ଯେବେ ପାହିଗଲା ରାତି,
ଏ କି ହେଲା ସତେ ହାୟ ପାରୁନାହିଁ ଭାବି ॥

*

ଯେଦ୍ଦନ ଦେଖିଲି ସଖୀ କୋକେଇରେ ଶୋଇ,
ଶମଶାନେ ନେଲେ କହି ରାମନାମ ସତ୍ୟ,
ଖଇ କଉଡ଼ି ବୁଣିଲି ଦେଲି ମୁଁ ବିଦାୟ,
ନୟନରୁ ଝରୁଛି ମୋ ଶ୍ରାବଣର ଧାର,
ଅଜଣା ରାଇଜେ କାହିଁ ଚାଲିଗଲ ହାୟ,
ଝୁରୁଛି ମୁଁ ସେଇଦିନୁ ତୁମ ଲାଗି ସଦା ॥

କାମନା କୁସୁମ ମୋର ମଉଳିଲା ଯେଣୁ ,
ଜୀବନଟା ଲାଗେ ମୋତେ ଦୁର୍ବିସହ ଖାଲି,
ବ୍ୟଥା ଓ ବେଦନା ସିନା ସାର ଆଜ ମୋର,
ତୁମର ବିରହେ ଯଛେ ଝୁରୁ ସଦା ଲୁବ୍ଧ,
ଶାନ୍ତି ପାଉ ଆତ୍ମା ତୁମ ଏତିକି କାମନା ॥



## "ହେଲି ମୁହିଁ ଲକ୍ଷ୍ମୀଛଡ଼ା"

ହତଶ୍ରୀ ମନ୍ଦିର ମୋ,
ଲକ୍ଷ୍ମୀ ଗଲି ଚାଲି,
ଫେରିବନି ଫେରିବନି ଆଜି,
ଅଣଲେଉଟା ସେ ରୁକୁଣା ରଥ,
ଭୋଗିବି ମୁଁ କର୍ମଫଳ ମୋର ॥
ଅନ୍ତର ମୋ ଦଗ୍ଧ ହୁଏ,
କାହିଁକି କେଜାଣି ?

× × ×

ଜଗତର ନାଥ ତୁମେ,
"ପ୍ରଭୁ ଜଗନ୍ନାଥ"
ଭୋଗିଲ କଷଣ—
ହୋଇ ଲକ୍ଷ୍ମୀଛଡ଼ା,
ମିଳିଲନି ଅନ୍ନପାଣି—
ବାରଦ୍ୱାର ବୁଲି,
ଫେରିଥିଲେ ଲକ୍ଷ୍ମୀ ସିନା
ଶ୍ରୀମନ୍ଦିରେ ପୁଣି,
କିନ୍ତୁ, ଲକ୍ଷ୍ମୀ ମୋର—
ଫେରିବନି ଫେରିବନି ଆଜି
ହତଶ୍ରୀ କରି ମୋ ମନ୍ଦିର
ଚାଲିଗଲି ଚାଲିଗଲି ଆହା,—
କାହିଁ କେଉଁ ଅଜଣା ରାଇଜେ,
ଏ ଜୀବନ ସାରା ମୁହିଁ,
"ହେଲି ଲକ୍ଷ୍ମୀଛଡ଼ା" ॥

—o—

## ଏଇ ତ ଦୁନିଆଁ

ମୋ ମନର ଅନ୍ତରାଳେ,
କେତେ ବ୍ୟଥା,
କେତେ ମନସ୍ତାପ,
କେତେ ଅନୁତାପ,
ଠିକ୍ ଏକ ଘନ କୁହୁଡ଼ିର—
ଆସ୍ତରଣ ପରି,
କେହି ଦେଖିପାରେନି,
କେହି ଜାଣିପାରେନି,
କେହି ବୁଝିବି ପାରେନି,
ଯଦି କେହି ବୁଝୁଥିଲ
ଆଉ ଜାଣୁଥିଲ—
ସେ ଥିଲ
ତୁମେ !

ମୋ' ମନର
ଅନ୍ଧକାରଛନ୍ନ
ମରୁପ୍ରଦେଶରେ
ତୁମେ ଥିଲ ଏକ
ଉଜ୍ଜ୍ୱଳ ଆଲୋକ ॥

ହଠାତ୍ ଏକ
ନିର୍ମଳ ନୀଳ ଆକାଶରେ
ଏକ ତେଜଆନ ଧୂମକେତୁର
ଆଗମନକୁ,
ନୀରବ, ନିଷ୍ପନ୍ଦ ଆଉ ନିସ୍ତେଜ ହୋଇ

ନକ୍ଷତ୍ର ଜଳପରି
ମୋ ଗନ୍ତବ୍ୟ ପଥର
ତୁମେ ଥିଲ ପାଥେୟ ॥

ଆହା !
କି କଳ୍ପନା,
କେତେ ଆଶା,
କି ରଙ୍ଗୀନ ସ୍ୱପ୍ନ ?

କିନ୍ତୁ ହାୟ !
ଏ କ'ଣ ହେଲା ?
ଲିଭିଗଲା ସହସା
ମୋ ମନର ବୈଦ୍ୟୁତିକ ବତ୍ତି,
ଆଖି ଆଗେ ମିଚ ମିଚ
ନିରନ୍ଧ୍ର ଅନ୍ଧକାର,
ତଥାପି ମୁଁ ବଞ୍ଚିଛି,
କିଏ କହେ—
ମରିବା ପାଇଁ ମଣିଷର ଜନ୍ମ ?
ଅତୃପ୍ତ ବାସନା,
ଅପୂର୍ଣ୍ଣ କାମନା,
ଉନ୍ମନିଆ ମନ
ହାହୁତାଶମୟ ଜୀବନ
ଏଇ ତ ଦୁନିଆଁ ?



# ଅତୀତ ଯେ ମରେନା

ସାଜ ମୁଁ ନୀଳକଣ୍ଠ,
କରୁଛି ଆକଣ୍ଠ ପାନ,
ତୁମର ସେ ମଧୁମଦିରା,
ସେଇ ନିଶା ଘାରୁଛି ଗୋ ମୋରେ,
ଶତ ଚେଷ୍ଟା କରେ ମୁହିଁ,
ଭୁଲିବାକୁ ବିଗତ ଅତୀତ
ଛିନ୍‌ଭିନ୍‌ କରେ ମତେ ବର୍ତ୍ତମାନ ଆଜି,
ମୁଁ ଖାଲି ଝୁରୁଛି ତୁମକୁ,
ବିସ୍ମୃତିର ଗର୍ଭେ କିମ୍ବା
ଲୁଚେ ନାହିଁ ଅତୀତର ସ୍ମୃତି,
ମନ ଛୁଏଁ ତୁମ ସେଇ
ସାହଚର୍ଯ୍ୟ ଖାଲି ।

ଜୀବନର ଶେଷ ପର୍ଯ୍ୟାୟରେ
ସମୟର ରୁପେଲି ପର୍ଦ୍ଦାରେ,
ଭାସିଉଠେ ଆଖିଆଗେ,
ଆଦ୍ୟ ପ୍ରାନ୍ତ ଆମ ଚିତ୍ରପଟ,
କେତେ ଯେ ଅସହ୍ୟ ବେଦନା,
ଆଜି ମର୍ମନ୍ତୁଦ ଦୁଃଖେ
ତୁମେ ଥିଲ ସଙ୍ଗିନୀ ମୋ ଯାତନାର ସାଥୀ,
ଭୁଲିଗଲ ତୁମେ ସିନା କଲ ମତେ ପର,
ମୁଁ କିନ୍ତୁ ପାରେନି ଜମା କରି ଶତଚେଷ୍ଟା,
କି କରିବି ହାୟ ହାୟ ଅତୀତ ଯେ ମରେନା ॥

—o—

# କେତେ ଯେ ବସନ୍ତ ସତେ

ମୁଁ ଦେଖୁଛି ସ୍ୱପ୍ନ,
କେତେ ଯେ ଦରବିକଶିତ ଗୋଲାପ କଳିକାର
ଲାସ୍ୟମୟ ରୂପ ମାଧୁରୀ,
କେତେ ଯେ ଯାଈ, ଯୂଈ, ମଲ୍ଲୀ, ମାଳତୀର
ସୁଗନ୍ଧିତ ମହକ,
କେତେ ଯେ ଡାଲିଆ, କନିଆ ଆଉ ---
ଝୋଟେନ୍‌ର ଅପରୂପ ସାଜସଜ୍ଜା,
ନୁହେଁ ଖାଲି ନବଢ଼ ତମସା ରାତିରେ
ଶୟନ କକ୍ଷରେ ।
ନୁହେଁ ଖାଲି କର୍ମହୀନ ଅବସରେ
ନିର୍ଜନ ଧରଣୀ ବକ୍ଷରେ ।
ନୁହେଁ ଖାଲି ଜ୍ୟୋସ୍ନାପ୍ଲୁତ ସୁଶୀତଳ
ଯାମିନୀ ଲକ୍ଷରେ ।
ମୁଁ ଦେଖୁଛି ସ୍ୱପ୍ନ,
ମୋ ଜୀବନର ପ୍ରତିଟି ଘଣ୍ଟା, ମିନିଟ୍—
ଆଉ ସେକେଣ୍ଡ କଣ୍ଟାର ଟିକ୍ ଟିକ୍ ଆଓ୍ୱାଜରେ ।

ଧୀର ସମୀରରେ ଢଳ ଢଳ ହୋଇ ନାଚୁଥିବା
ଭିନ୍ନ ଭିନ୍ନ ସ୍ତବକର ସୁବାସିତ ହସ୍ତୀ,
ଆଉ ସୁରଭିତ ରୂପ ଲାବଣ୍ୟର ଆକର୍ଷଣରେ
ମୁଗ୍‌ଧ ହୋଇ, ପ୍ରଜାପତି ସାଜି
ଉଡ଼ି ବୁଲେଁ ମୁଁ ଫୁଲରୁ ଫୁଲକୁ ।
ମୋର ମଧୁ ଗୁଞ୍ଜନରେ କେତେ ଯେ
ହସର ପାଖୁଡ଼ା ମେଲି ହୋଇଯାଇଚି ।
ସେଇ ଲୀଳାୟିତ କୁସୁମ ରାଜିର
ଛଳ ଆତ୍ମମୟ ତେଜୀୟାନ ସୁଷମାରେ
ମୁଁ ତୃପ୍ତି ଲଭ କରୁଥିଲି ।

କ୍ଷଣକର ଉତ୍ତେଜନାରେ—
ଆଜି ଥରକର ମଧୁ ସଂଗ୍ରହରେ,
ସେମାନଙ୍କର ହସର ପାଖୁଡ଼ା
ଝଡ଼ି ଯିବାକୁ ଦେବା
ମୋର ଥିଲା କଳ୍ପନାର ବାହାରେ
ହୁଏତ ସେମାନେ ତା ବୁଝୁଁ ନ ଥିଲେ ।

ତେଣୁ ମୁଁ ଦେଖୁଛି ସ୍ୱପ୍ନ
ମୋର ଅସୀମ ଭାବନାରାଜିର ମଧ୍ୟ ଦେଇ,
ଏକ ଅପରିସୀମ ଗ୍ଳାନିକର ବେଦନାବୋଧ
ମୋ ଅନ୍ତରରେ ହାହାକାର କରି ଉଠୁଛି
ଆଜି ମୁଁ ଅନୁତପ୍ତ, ଆହତ, ବ୍ୟଥିତ, ବିବ୍ରତ
ହାୟ ! କ'ଣ କଲି ମୁଁ ?
ଥରେ ଭଲ ଲାଭିଥାନ୍ତି ଅପୂର୍ବ ଆତ୍ମପ୍ରସାଦ
ଯେଇ ଝରନ୍ତ ମଧୁ ଚୁମ୍ବନରେ,
କ'ଣ ବା ପାଇଲେ ସେମାନେ ?
ଅଜାଣତରେ ବଞ୍ଚିତ କଲେ ଯିଏ ମୋତେ,
ରଙ୍ଗ, ରସ, ସୁରଭି, ସୁଗନ୍ଧ,—
ଝରିଗଲା ଆହା—
ଅକାଳରେ କେତେ ଯେ,
ଡାଳିଆ, ଜନିଆଁ ଆଉ ଗୋଲାପ, ଚମ୍ପକ
ଗାଇଗଲା ବ୍ୟର୍ଥଗୀତି କେତେ ଯେ ବସନ୍ତ ସତେ ???

—୦—

# ମହାକାଳରୂପୀ ମାଘ ପୂର୍ଣ୍ଣିମା

ରାଣୀ ଗୋ !

ଚୁମି ଚୁମି ତୁମ ସେଇ ଗୋଲାପରୁ
ନବମାତ କୋମଳ ଚକୁଟକ,
କହୁଥିଲ ଯେବେ ସଖୀ, ସେଇ ତୁମ
ହୃଦରାଇଜରେ, ରୂପରାଜ ଜେମାର
ନଅର ପାଶେ, କାଚକେନ୍ଦ୍ର ପୋଖରୀ
ପାଣିରେ, ପିପାସିତ ପ୍ରାଣେ ପୋଷି—
ବରଷ ସେ ଆଶା, ବିରହ ବ୍ୟଥିତ ଏକ
ରାଜହଂସ, ପଦ୍ମବନ ମଧ୍ୟେ ଥାଇ କରୁଥିଲ—
କେତେ ଯେ କରୁଣ ବିଳାପ, ପାଇବାକୁ
ସାଥୀ ତା'ର ଚିର ଆକାଂକ୍ଷିତ ।

ପ୍ରଣୟିନୀ ହୃଦେ ଭରି ପ୍ରୀତି ଓ ପୁଲକ
ରଚିବାକୁ ଅଭିସାର ଏକାନ୍ତ ଗୋପନେ
ସେଦିନ ସୁନ୍ଦର ଥିଲା, ସେଇ ରାତି—
ଥିଲା ସତେ କେତେ ମନୋରମ ।

ବାହାରେ ଚନ୍ଦ୍ରର ଜ୍ୟୋତ୍ସ୍ନା ହସୁଥିଲା,
ଜରି ଜରି ହୋଇ, କୁଚୁ କୁଚୁ
କରୁଥିଲା ସତେ ଅବା, ରତିକ୍ଳାନ୍ତା
ସେ କୁମୁଦମାରେ, ଚୁମ୍ବିବାକୁ
ଗାଢ଼େ ତାର ରକ୍ତିମ ଅଧରେ,
ସେଇ ସେ ପୁନେଇଁ ଚନ୍ଦ୍ର,
ସତେ ଆହା ଲୁଚିଗଲା କାହିଁ ?

ମନେପଡ଼େ ରାମଗିରି ଅଭିଶପ୍ତ ଯକ୍ଷ,
ବିରହ ବ୍ୟଥିତ ତାର ଅନ୍ତରର ଗାଥା,
ଦୂତ କରି ଜଳଦରେ ସେ ଅଳକାପୁରେ,
ଯକ୍ଷାବାସେ ପ୍ରିୟା ତାର ଥିବ ପଥ ଚାହିଁ ।

କେଦାର ଓ ଗଉରୀର ପ୍ରୀତି ଦିଆନିଆ,
ପ୍ରେମର ମୀନାର ରଚି ଗଲେ ବାଦସାହ
ମମତାଜ ନାମେ ସେଇ ଅମର କୀରତି,
ବଞ୍ଚିଛି ସମସ୍ତ ସ୍ମୃତି ବଞ୍ଚିବ ବି ସବୁ ।

କିନ୍ତୁ କୁହ ସଖୀ, ଯେତେ ବି ଡାକିଲେ ଲୁହ
ତୁମ ଲାଗି ନିରସ ଓ ଶୁଷ୍କ ମନ ନେଇ,
ଫେରିବ ସତେ କି ଆଜ—
ସେ ଅତୀତ ହଜିଗଲା ଯାହା
ମହାକାଳରୂପୀ ସେଇ ମାଘ ପୂର୍ଣ୍ଣିମାରେ ???

—o—

## ବ୍ୟର୍ଥ ଜୀବନ!

ତୁମେ ଯଦି କେବେ ଦେଖିବ,
ଦେଖିବ, ମୁଁ ଖାଲି ସବୁବେଳେ ହସୁଛି ।
ଯଦିଓ ମୋ ହସରେ
ନାହିଁ ମାଦକତା,
ନାହିଁ ମଧୁରତା,
ନାହିଁ ସରସତା,
ତଥାପି—
ମୋ ଜୀବନର ବ୍ୟର୍ଥତା,
ଏଇ ମୋର ହସରେ ହିଁ ଭରି ରହିଛି ।

ନିଜେ ହସି ଏବଂ ଅନ୍ୟକୁ ହସାଇ,
ଏଇ ଅଦ୍ଭୁତ ଦୁନିଆଁ ଟାକୁ
ମୁଁ ଉପଭୋଗ କରିବାକୁ ଚାହେଁ,
ହୁଏତ—
ତୁମେ କହିବ—
ଏଥିରେ ମୁଁ ଶାନ୍ତି ପାଇବିନି ।

ହୋଇପାରେ,
ବ୍ୟର୍ଥତା ହିଁ ମଣିଷ ଜୀବନର
ଚିରନ୍ତନ ଉତ୍‌ଥାନ ପତନର ଖିଅ,
ମୁଁ ଜାଣିପାରେନି
ଏ ପାଇଁ ଦାୟୀ କିଏ ?

ଯଦିଓ ମୁଁ ତାର କିଛି କରିପାରିବିନି,
ତଥାପି—

ଥରେ ଯଦ୍ଧ ମୁଁ ତାକୁ ଦେଖନ୍ତି
ତେବେ—
ଖୁବ୍ ଯୋର୍‌ରେ,
ତା ଆଗରେ ମୁଁ ହସିଉଠନ୍ତି,
ହୁଏତ କେହ୍ନି ଭାବନ୍ତା
ମୁଁ ତାକୁ ବିଦ୍ରୂପ କରୁଛି ।

କିନ୍ତୁ ନା,
ସେ ଠିକ୍ ବୁଝନ୍ତା
ମୋ ହସର ତାତ୍ପର୍ଯ୍ୟ,
କେଜାଣି—
ସେ ମୋତେ ଆହୁରି ଯୋର୍‌ରେ,
ହସିବାକୁ ଦିଅନ୍ତା
କିମ୍ବା କୁହନ୍ତା—
ମୋ ଗଣି—
ତୁମେ ଆଉ ଜମା ହସନା ॥

—o—

## ପୁରୁଣା କେତୋଟି ଚିଠି

ଯେତେ ଯେତେ ଚିଠି ଦେଇଛ ଗୋ ତୁମେ ମୋତେ,
ରଖିଛି ସାଇତି ଅତି ଯତ୍ନେ ତାହା ଯେଣୁ ,.
ଅତୀତର ସ୍ମୃତି ବିଜଡ଼ିତ ଯେତେ ଗାଥା,
ମୋ ଜୀବନ ମରୁଭୂମେ ଅଟେ ଓଏସିସ୍ ॥

ସିନ୍ଦୂରର ଦାଗ, ଜବଣର ଗନ୍ଧ ତୁମ,
ରହିଛି ବା କାହିଁ ଲେତକ ବନ୍ଧୁର ଚିହ୍ନ,
ରୂପ ଯା ଦେଇଛ ହୃଦ ଖୋଲି ମନକଥା,
ରାତି ରାତି ରହି ଉଜାଗର ମୋର ପାଇଁ ॥

ସେଇ ସେ ଦିନର କଣୋଣ ବସ୍ତୁସେ ତୁମ,
ଯେତେ ଯାହାସବୁ ସପନ ଗୋ ଦେଖୁଥିଲ,
ଲୁହୁଁଥିଲ କବା ତନୁମନ ବର୍ଷାଧର
କହେ ଆଜ ସବୁ ଚୁପି ଚୁପି ସେଇ ଚିଠି ॥

ଗଭୀର ରାତ୍ରୀରେ ସମସ୍ତେ ଶୋଇଲା ପରେ,
ଭାବି ଭାବି ମୋର କଥା ଆସେ ନାହିଁ ନିଦ,
ଛଟପଟ ହୁଏ ମନ ମିଳନର ପାଇଁ,
ଲେଖି ବସ ତେଣୁ କାଗଜ କଲମ ଧରି ॥

ସମ୍ବୋଧନ କର ପ୍ରାଣର ଦେବତା ମୋର,
ଜାଣେ ନାହିଁ ଭାଷା କ'ଣ ଲେଖିବି କୁହ ?
ମନ କଥା ମୋର ସବୁତ ଜାଣୁଛ ତୁମେ
ତୁମ ବିନା ଲାଗେ ସବୁ କିଛି ବିଷପିତା ॥

ଲେଖୁ ଲେଖୁ କେବେ ଶୋଇପଡ଼ ଶେଯପରେ,
ଅସଂଯତ ହୁଏ ପିନ୍ଧିଲା ବ୍ଲାଉଜ ଶାଢ଼ୀ,
ଅଜାଣତେ ଖସିପଡ଼େ କାଗଜ କଲମ,
ମଥାପରେ ଅବା ଛାତିପରେ ବେଣୀ ତଳେ ।।

ସପନରେ ଦେଖ ବରବେଶେ ତୁମ ପାଶେ,
ମଧୁଶଯ୍ୟା ଘରେ ଉପସ୍ଥିତ ଆମେ ଦୁହେଁ,
ମୁଣ୍ଡରେ ଓଢ଼ଣା ମଥାରେ ସିନ୍ଦୂର ନାଇ,
ଟାଣିନିଏ ମୋର ଛାତିପରେ ତୁମ ତନୁ ।।

ସପନ କି କେବେ ସତ ହୁଏ କହ ସଖୀ ?
ବିତିଛି ସେଦିନ ହଜିଛି ବି ସେ ବୟସ,
ମନେପଡ଼େ ଯେବେ ଅତୀତର ସେଇକଥା,
କାହିଁକି କେଜାଣି ହାଇଁପାଇଁ ଖାଲି ଲାଗେ ।।

ମୁଁ ତ ଅଛି ଆଜ ତୁମଠାରୁ ବହୁଦୂରେ,
ଦୂରେଇଛି ବି ଗୋ ତନୁ ମନ ସବୁକିଛି,
ତଥାପି ତୁମର ସାନିଧ ଗୋ ବେଳେବେଳେ,
ଆଣିଦିଏ ସେଇ ପୁଲୁଣା କେତୋଟି ଛଟି ।।



# ଶୀତ ରାତିର କବିତା

ଶୀତ, ଆଜି ଘୋର ଶୀତ,
ଥଣ୍ଡା ଆଜି ଖୁବ୍ ଯୋର୍ ହୁଏ,
ଏତେବେଳେ ତୁମ କଥା ମନେପଡ଼େ ମୋର,
ଆଖିଆଗେ ତୁମ ମୂର୍ତ୍ତି ନାଚ ନାଚ ଯାଏ ॥

ତୁମେ ଆଜ କାହିଁ କେତେ ଦୂରେ,
ମନ ଖୋଜେ ତୁମର ପରଶ,
ଘୁରି ବୁଲି ତୁମେ ଖାଲି ଏଇ କୋଠରୀରେ
ଭଲ ଜମା ଲାଗେ ନାହିଁ—
ଲାଗେ ଖାଲି ନୀରସ ନୀରସ ॥

ତୁମ ନେଇ କେତେ କଥା ମନେପଡ଼େ
ଭାବନାର ଶିଅ ହୁଏ ଅଡୁଆ ଛଡୁଆ
ଇଚ୍ଛା ହୁଏ ଭିଡ଼ିବାକୁ ତୁମ ତନୁ ଏଇ ବୁକୁପରେ
ହଠାତ୍ ଆସିଯାଏ କେତେବେଳେ—
ଦୁଷ୍ଟ ପାହାନ୍ତିଆ ॥

ସତେ ତୁମେ କି ସୁନ୍ଦର !
କେତେ ମୁହେଁ ଖୋଜେ କିନ୍ତୁ ପାଏନା ତ କାହିଁ,
ସେଇ ତୁମ ହସ ହସ ମୁହଁ ଆଉ ଆଖିର ଇଶାରା
ମୋ ରାଣୀ ! ସତେ ଜମା ଭୁଲିପାରେ ନାହିଁ ॥

ଶୀତ ଆଜି ଖୁବ୍ ଜୋର୍
ଏକାଟିଆ ଖଟଟାରେ ରେଜେଇବି ଉଷୁମ ଲାଗୁନି,
ଆଃ ! ତୁମେ ଭଲା ଏତେବେଳେ ପାଖରେ ଥାଆନ୍ତ ?
ଛାଡ଼ ! ଶୋଇବାକୁ ଜମା ଆଉ ସ୍ପୃହା ବି ଲାଗୁନି ॥

—o—



## ଲେଖକଙ୍କର ସଂକ୍ଷିପ୍ତ ପରିଚୟ—

ନୟାଗଡ଼ ଜିଲ୍ଲାର ପ୍ରସିଦ୍ଧ ରଘୁନାଥପୀଠ ଓଡ଼ଗାଁଠାରୁ ପାଞ୍ଚ କିଲୋମିଟର, ଉତ୍ତର ଦିଗରେ ଅବସ୍ଥିତ କୋଇ ପେଠା ଗ୍ରାମରେ ୧୯୩୭ ମସିହା ମାର୍ଚ୍ଚ ୧୫ ତାରିଖରେ ଜନ୍ମ । ପିତୃଦତ୍ତ ନାମ-ଶ୍ରୀ ଲୋକନାଥ ମିଶ୍ର । ପିତା ୰ ଗୋପିନାଥ ମିଶ୍ର, ମାତା-୰ ସେବତୀ ଦେବୀ । କାବ୍ୟ କବିତା ପଠନ, ସଂଗୀତ ଗାନ, ଆବାଲ୍ୟରୁ ହବି ଥିଲା । ୧୯୬୩ ମସିହାରେ ପିତାଙ୍କର ପରଲୋକ ଗମନରେ ମର୍ମାହତ ହୋଇ କବିତା ରଚନା ଆରମ୍ଭ

କବିତା ସଂକଳନ-ପ୍ରଭୁ ରଘୁନାଥ ଭଜନ ମାଳା ।

ବର୍ତ୍ତମାନର ବାସସ୍ଥାନ—ଗ୍ରା/ପୋ: ଅ:-ଓଡ଼ଗାଁ

ଜି-ନୟାଗଡ଼

